# ଶ୍ରୀ ହନୁମାନ୍ ଚାଳୀସା

( ଓଡ଼ିଆ ଅନୁବାଦ ସହ )

ଶ୍ରୀମତ୍ ସ୍ୱାମୀ ହରଚରଣ ଦାସ ଜୀ ମହାରାଜ

# ଶ୍ରୀ ହନୁମାନ୍ ଚାଳୀସା

( ଓଡ଼ିଆ ଅନୁବାଦ ସହ )

ମୂଳ ରଚନା :

ଭକ୍ତକବି ସନ୍ଥ ଗୋସ୍ୱାମୀ ତୁଳସୀ ଦାସ ଜୀ ମହାରାଜ

( ରାମାନନ୍ଦୀୟ )

ଶ୍ରୀମତ୍ ସ୍ୱାମୀ ହରିଚରଣ ଦାସ ଜୀ ମହାରାଜ

ପ୍ରଥମ ସଂସ୍କରଣ : ୨୦୦୦

ଶ୍ରୀରାମ ନବମୀ : ତା ୨-୪-୧୯୮୨

ଶ୍ରୀମତ୍ ସ୍ୱାମୀ ହରଚରଣ ଦାସ ଜୀ ମହାରାଜ

ପ୍ରକାଶକ :

ଶ୍ରୀ ରାମଚରିତ ମାନସ ପ୍ରଚାରିଣୀ ସମିତି

ବୈକୁଣ୍ଠ ଆଶ୍ରମ ପ୍ରକାଶନୀ

ୟୁନିଟ୍-୯, ଭୁବନେଶ୍ୱର - ୭୫୧୦୦୭

ମୁଦ୍ରଣ :

ନଭ ପବ୍ଲିଶିଂ ପ୍ରେସ୍,

ବାଲୁବଜାର, କଟକ-୨

ମୂଲ୍ୟ—ଦୁଇ ଟଙ୍କା ମାତ୍ର

# ଉତ୍ସର୍ଗ

ଶ୍ରୀ ହନୁମାନଜୀ ପ୍ରଭୁ ! କୃପାକରୁ ! ଆପଣଙ୍କ ପାଇଁ

ଉଚ୍ଛିଷ୍ଟ ଆପଣଙ୍କର ।

ପ୍ରଭୁ ସେବାରେ,

— ହରଚରଣ —

ଶ୍ରୀ ହନୁମତେ ନମଃ

# ଶ୍ରୀ ହନୁମାନ୍ ଚାଳୀସା

## ଦୋହା

ଶ୍ରୀଗୁରୁ ଚରନ ସରୋଜ ରଜ
ନିଜ ମନୁ ମୁକୁରୁ ସୁଧାରି ।
ବରନଉଁ ରଘୁବର ବିମଲ ଜସୁ
ଜୋ ଦାୟକୁ ଫଲ ଚାରି । * ।

ବୁଦ୍ଧିହୀନ ତନୁ ଜାନିକେ,
ସୁମିରୌଂ ପବ୍‌ନ-କୁମାର ।
ବଲ ବୁଦ୍ଧି ବିଦ୍ୟା ଦେହୁ ମୋହି
ହରହୁ କଲେସ ବିକାର । † ।

---

ଦୋହା—ଶ୍ରୀଗୁରୁଦେବଙ୍କ ପାଦପଦ୍ମର ଧୂଳିଦ୍ୱାରା ନିଜର ମନ ଦର୍ପଣକୁ ପରିଷ୍କାର କରି ଚତୁର୍ବର୍ଗ ଫଳପ୍ରଦ (ଧର୍ମ, ଅର୍ଥ, କାମ, ମୋକ୍ଷ) ପ୍ରଭୁ ଶ୍ରୀ ରଘୁନାଥଙ୍କ ବିମଳ ଚରିତକୁ (ମୁଁ ଗୋସ୍ୱାମୀ ତୁଳସୀ ଦାସ) ବର୍ଣ୍ଣନା କରୁଅଛି । * ।

ମୁଁ ନିଜେ ଅତ୍ୟନ୍ତ ବୁଦ୍ଧିହୀନ, ଏ କଥା ଜାଣି, ହେ ପବନ କୁମାର ଆପଣଙ୍କୁ ସ୍ମରଣ କରୁଅଛି ଯେ ମୋର ସକଳ ଦୋଷ ଓ ଦୁଃଖ ନଷ୍ଟ କରି ମୋତେ ବଳ, ବୁଦ୍ଧି, ବିଦ୍ୟା ପ୍ରଦାନ କରନ୍ତୁ । † ।

## ଚୌପାଇ

ଜୟ ହନୁମାନ ଜ୍ଞାନ ଗୁନ ସାଗର ।
ଜୟ କପୀସ ତିହୁଁ ଲୋକ ଉଜାଗର ।୧।

ରାମ ଦୂତ ଅତୁଲିତ ବଲଧାମା ।
ଅଂଜନ-ପୁତ୍ର ପଵନ ସୁତ ନାମା ।୨।

ମହାବୀର ବିକ୍ରମ ବଜରଙ୍ଗୀ ।
କୁମତି ନିଵାର ସୁମତିକେ ସଙ୍ଗୀ ।୩।

କଞ୍ଚନ ବରନ ବିରାଜ ସୁବେଶା ।
କାନନ କୁଣ୍ଡଲ କୁଞ୍ଚିତ କେଶା ।୪।

ହାଥ ବଜ୍ର ଔ ଧ୍ୱଜା ବିରାଜୈ ।
କାନ୍ଧେ ମୂଁଜ ଜନେଉ ସାଜୈ ।୫।

---

ଚୌପାଇ ୧ । ସମସ୍ତ ଦିବ୍ୟଜ୍ଞାନ ଓ ଗୁଣର ସାଗର ହେ ଶ୍ରୀ ହନୁମାନଜୀ ଆପଣଙ୍କର ଜୟ ହେଉ । ହେ କପିଶ୍ରେଷ୍ଠ ! ତିନିଲୋକକୁ ଆପଣଙ୍କର ଯଶ ଆଲୋକିତ କରୁଅଛି । (ଆପଣଙ୍କର ଜୟ ହେଉ) ।

୨ । ଅନୁପମବଳ ବିକ୍ରମର ଭଣ୍ଡାର ହେ ଶ୍ରୀରାମ ଦୂତ ! ଆପଣ, ଅଞ୍ଜନା-ସୁତ, ପବନ-ତନୟ ଆଦି ନାମରେ ପ୍ରସିଦ୍ଧ ଅଟନ୍ତି ।

୩ । ହେ ମହାବୀର ପରାକ୍ରମୀ ବଜ୍ରସମ ଶରୀରଧାରୀ, ଅସାଧୁ ବ୍ୟକ୍ତିଙ୍କୁ ଦମନ କରି, ସଦା ସଜ୍ଜନମାନଙ୍କ ଗହଣରେ ଥାଆନ୍ତି ।

୪ । ସୁବର୍ଣ୍ଣ ଭଳି ଆପଣଙ୍କର ଶରୀରର କାନ୍ତି ଶୋଭିତ । କର୍ଣ୍ଣରେ କୁଣ୍ଡଳ, କୁଞ୍ଚିତ କେଶ—

୫ । ଆପଣଙ୍କ ଏକ ହସ୍ତରେ ବଜ୍ର, ଅନ୍ୟ ହସ୍ତରେ ପତାକା ଓ ସ୍କନ୍ଧରେ ତୃଣ ନିର୍ମିତ ଯଜ୍ଞୋପବୀତ ଶୋଭା ପାଉଅଛି ।

ଶଙ୍କର ସୁଓ୍ୱନ କେଶରୀ ନନ୍ଦନ
ତେଜ ପ୍ରତାପ ମହା ଜଗ ବନ୍ଦନ ।୬।
ବିଦ୍ୟାଓ୍ୱାନ ଗୁଣୀ ଅତି ଚାତୁର ।
ରାମ କାଜ କରିବେ କୋ ଆତୁର ।୭।
ପ୍ରଭୁ ଚରିତ୍ର ସୁନିବେ କୋ ରସିୟା ।
ରାମ ଲଖନ ସୀତା ମନ ବସିୟା ।୮।
ସୂକ୍ଷ୍ମ ରୂପ ଧରି ସିୟାହିଂ ଦିଖାଓ୍ୱା ।
ବିକଟ ରୂପ ଧରି ଲଙ୍କ ଜରାଓ୍ୱା ।୯।
ଭୀମ ରୂପ ଧରି ଅସୁର ସଂହାରେ ।
ରାମଚନ୍ଦ୍ର କେ କାଜ ସଁଓ୍ୱାରେ ।୧୦।

---

୬ । ହେ ଶିବ ସ୍ୱରୂପୀ (ଅଯ୍ୱାଦୈ ପୁତ୍ର, ଅର୍ଥାତ୍ ପ୍ରଭୁ ଶ୍ରୀରାମଙ୍କ ସେବା ପାଇଁ ସମସ୍ତ ଦେବତା ଅବତାର ଗ୍ରହଣ କରି ମର୍ତ୍ତ୍ୟରେ ଜନ୍ମଗ୍ରହଣ କଲାବେଳେ ସ୍ୱୟଂ ଶ୍ରୀ ରୁଦ୍ର ହନୁମାନ ରୂପରେ ପ୍ରକଟିତ ହୋଇଥିଲେ) ହେ, କେଶରୀ ନନ୍ଦନ, ଆପଣଙ୍କର ମହାନ୍ ତେଜ ଓ ପରାକ୍ରମ ଦ୍ୱାରା ଆପଣ ସମସ୍ତ ଜଗତର ବନ୍ଦନୀୟ ଅଟନ୍ତି ।

୭ । ସମସ୍ତ ବିଦ୍ୟାର ଆଧାର, ସର୍ବ-ଗୁଣ ସମ୍ପନ୍ନ, ଅତ୍ୟନ୍ତ ଚତୁର, ଶ୍ରୀରାମଙ୍କ କାର୍ଯ୍ୟ-ସମ୍ପାଦନ-ତତ୍ପର ଶ୍ରୀ ହନୁମାନଜୀ ଆପଣଙ୍କୁ ମୋର ପ୍ରଣାମ ।

୮ । ପ୍ରଭୁ ଶ୍ରୀରାମଙ୍କ ଲୀଳା ଶ୍ରବଣ ପ୍ରିୟରସଗ୍ରାହୀ, ଆପଣଙ୍କ ହୃଦୟରେ ଶ୍ରୀରାମ, ଲକ୍ଷ୍ମଣ ଓ ସୀତା ସର୍ବଦା ରହିଅଛନ୍ତି ।

୯ । ଆପଣ ଅତି ସୂକ୍ଷ୍ମରୂପ ଧାରଣ କରି ସୀତାଙ୍କୁ (ଅଶୋକ ବନରେ ଥିବା ସମୟରେ) ସାକ୍ଷାତ କରି ଥିଲେ ଓ ବିକଟାଳ ଶରୀର ଧାରଣ କରି ଲଙ୍କା ଦହନ କଲେ ।

୧୦ । ଭୀଷଣକାୟ ହୋଇ ଅସୁରମାନଙ୍କୁ ସଂହାର କରି ଶ୍ରୀ ରାମଚନ୍ଦ୍ରଙ୍କ କାର୍ଯ୍ୟକୁ ସଂପାଦନ କରିଅଛନ୍ତି ।

ଲାୟେ ସଞ୍ଜୀଓ୍ୱନ୍ ଲଖନ ଜୟାୟେ ।
ଶ୍ରୀ ରଘୁବୀର ହରଷି ଉର ଲାୟେ ।୧୧।

ରଘୁପତି କୀହ୍ନୀ ବହୁତ ବଡ଼ାଇ ।
ତୁମ ମମ ପ୍ରିୟ ଭରତହିଁ ସମ ଭାଇ ।୧୨।

ସହସ୍ର ବଦନ ତୁହ୍ମାରୋ ଯଶ ଗାଓ୍ୱେ ।
ଅସକହି ଶ୍ରୀପତି କଣ୍ଠ ଲଗାଓ୍ୱେ ।୧୩।

ସନକାଦିକ ବ୍ରହ୍ମାଦି ମୁନୀସା ।
ନାରଦ ସାରଦ ସହିତ ଅହୀସା ।୧୪।

ଜମ କୁବେର ଦିଗପାଲ୍ ଜହାଁ ତେ ।
କବି କୋବିଦ କହି ସକେ କହାଁ ତେ ।୧୫।

---

୧୧ । ସଞ୍ଜୀବନୀ-ଔଷଧ (ଗନ୍ଧମାର୍ଦ୍ଦନ ପର୍ବତରୁ) ଆଣି ଲକ୍ଷ୍ମଣଙ୍କ ଜୀବନ ରକ୍ଷା କରିଛନ୍ତି । ପ୍ରଭୁ ଶ୍ରୀ ରଘୁନାଥ ଆନନ୍ଦିତ ହୋଇ ଆପଣଙ୍କୁ ନିଜ ହୃଦୟରେ ମିଶାଇ ଆଲିଙ୍ଗନ କଲେ ।

୧୨ । ରଘୁନାଥ ଆପଣଙ୍କର ଅତ୍ୟନ୍ତ ପ୍ରଶଂସା କରି କହିଛନ୍ତି— ହେ ହନୁମାନ, ଆପଣ ମୋର ଅତ୍ୟନ୍ତ ପ୍ରିୟ ଓ ଭରତ ପରି ଭାଇ ଅଟନ୍ତି ।

୧୩ । "ସହସ୍ର ମୁଖ (ଶେଷ ନାଗ) ଆପଣଙ୍କର ଯଶ ଗାନ୍ କରୁଅଛନ୍ତି" —ଏହା କହି ଶ୍ରୀ ସୀତାପତି ଆପଣଙ୍କୁ ନିଜର କଣ୍ଠ ଦେଶ ପର୍ଯ୍ୟନ୍ତ ଆଉଯାଇ କୋଳାଗତ କଲେ ।

୧୪ । ସନକାଦି (ସନକ, ସନନ୍ଦ, ସନାତନ, ସନତ୍କୁମାର) ବ୍ରହ୍ମା ଆଦି ଶ୍ରେଷ୍ଠ ମୁନିଗଣ, ନାରଦ, ସରସ୍ୱତୀ, ଶେଷଦେବ—

୧୫ । ଯମ, କୁବେର, ଦଶଦିଗପାଳ, କବି, ପଣ୍ଡିତ ପ୍ରଭୃତି ଯେତେ ଅଛନ୍ତି ଆପଣଙ୍କର ଯଶ କୀର୍ତ୍ତନରେ ଅସମର୍ଥ ହୋଇଛନ୍ତି ।

ତୁମ ଉପକାର ସୁଗ୍ରୀବହିଁ କୀନ୍ହା ।
ରାମ ମିଲାୟ ରାଜ ପଦ ଦୀନ୍ହା ।୧୬।

ତୁହ୍ମାରୋ ମନ୍ତ୍ର ବିଭୀଷନ ମାନା ।
ଲଙ୍କେଶ୍ୱର ଭଯେ ସବ ଜଗ ଜାନା ।୧୭।

ଯୁଗ ସହସ୍ର ଯୋଜନ ପର ଭାନୂ ।
ଲୀଲେ୍ୟା ତାହି ମଧୁର ଫଲ ଜାନୂ ।୧୮।

ପ୍ରଭୁ ମୁଦ୍ରିକା ମେଲି ମୁଖ ମାହୀଂ ।
ଜଲଧି ଲାଁଘି ଗଯେ ଅଚରଜ ନାହୀଁ ।୧୯।

ଦୁର୍ଗମ କାଜ ଜଗତକେ ଜେତେ ।
ସୁଗମ ଅନୁଗ୍ରହ ତୁହ୍ମାରେ ତେତେ ।୨୦।

ରାମ ଦୁଆରେ ତୁମ ରଖୱାରେ ।
ହୋତ ନ ଆଜ୍ଞା ବିନୁ ପୈସାରେ ।୨୧।

---

୧୬ । ଆପଣ ସୁଗ୍ରୀବଙ୍କ ସହ ଶ୍ରୀରାମଙ୍କ ମିତ୍ରତା ଘଟାଇ, ସୁଗ୍ରୀବଙ୍କୁ ରାଜଗାଦିରେ ଅଭିଷିକ୍ତ କରାଇ ତାଙ୍କର ବହୁ ଉପକାର କଲେ ।

୧୭ । ଏକଥା ସର୍ବଜ ବିଦିତ ଯେ (ସୀତାଙ୍କ ଅନ୍ୱେଷଣ ସମୟରେ) ଆପଣ ଦେଇଥିବା ଗୋପନୀୟ ପରାମର୍ଶ (ମନ୍ତ୍ର) ପାଳନ କରି ବିଭୀଷଣ ଲଙ୍କାର ରାଜା ହେଲେ ।

୧୮ । ହଜାର ହଜାର ଯୋଜନ ଦୂରରେ ଥିବା ସୂର୍ଯ୍ୟଦେବଙ୍କୁ ଆପଣ (ଜନ୍ମ ହେବା ମାତ୍ରେ) ପକ୍ୱ ସୁମିଷ୍ଟ ଫଳ ଭାବି ତୋଳି ଧରିଥିଲେ ।

୧୯ । ପ୍ରଭୁ ଶ୍ରୀରାମଙ୍କ ନାମାଙ୍କିତ ସ୍ୱହସ୍ତ ମୁଦ୍ରିକାକୁ ମୁଖରେ ଧାରଣ କରି ସମୁଦ୍ର ଲଙ୍ଘନ କରିବା ଆପଣଙ୍କ ପକ୍ଷେ ଆଶ୍ଚର୍ଯ୍ୟ ନ ଥିଲା ।

୨୦ । ଜଗତର ସମସ୍ତ ଅସାଧ୍ୟ ବା ଦୁର୍ଗମ କାର୍ଯ୍ୟ ସାଧନ ପାଇଁ ଆପଣଙ୍କର ସେହିପରି ଅତି ସୁଗମ ଅନୁଗ୍ରହ ମିଳିଥାଏ ।

୨୧ । ଆପଣ, ପ୍ରଭୁ ଶ୍ରୀରାମଙ୍କ ଦ୍ୱାର ରକ୍ଷକ ହୋଇଥିବାରୁ ଆପଣଙ୍କ ଆଦେଶ, ଅନୁଗ୍ରହ ବିନା ପ୍ରଭୁଙ୍କ ନିକଟରେ କେହି ପହଞ୍ଚି ପାରନ୍ତି ନାହିଁ ।

ସବ୍ ସୁଖ ଲହୈ ତୁହ୍ମାରି ସରନା ।
ତୁମ ରକ୍ଷକ କାହୂ କୋ ଡରନା ।୨୨।
ଆପନ ତେଜ ସହ୍ମାରୋ ଆପେ
ତିନୋ ଲୋକ ହାଁକ ତେଁ କାଁପୈ ।୨୩।
ଭୂତ ପିଶାଚ ନିକଟ ନାହିଁ ଆବୈ ।
ମହାବୀର ଜବ୍ ନାମ ସୁନାବୈ ।୨୪।
ନାସୈ ରୋଗ ହରୈ ସବ୍ ପୀରା ।
ଜପତ୍ ନିରନ୍ତର ହନୁମନ୍ତ ବୀରା ।୨୫।
ସଙ୍କଟ ତେଂ ହନୁମାନ ଛୁଡ଼ା ବୈ ।
ମନ କ୍ରମ ବଚନ ଧ୍ୟାନ ଜୋ ଲାବୈ ।୨୬।
ସବ ପର ରାମ ତପସୀ ରାଜା
ତିନକେ କାଜ ସକଲ ତୁମ ସାଜା ।୨୭।

---

୨୨ । ଆପଣଙ୍କର ଚରଣାଶ୍ରିତ ବ୍ୟକ୍ତି ସମସ୍ତ ସୁଖ ଲାଭକରେ ଏବଂ ଆପଣ ଯାହାର କର୍ତ୍ତା ତା'ର ବା ଡର କାହାକୁ ।

୨୩ । ଆପଣଙ୍କ ତେଜସ୍ୱୀନ୍ ଶକ୍ତିକୁ ଆପଣ ହିଁ ସମ୍ଭାଳି ରଖିଥାନ୍ତି । ଆପଣଙ୍କ ଗର୍ଜ୍ଜନରେ ତିନିଭୁବନ ପ୍ରକମ୍ପିତ ହୁଏ ।

୨୪ । ଯଦି କେହି ବ୍ୟକ୍ତି 'ମହାବୀର' ଏହି ନାମ ଉଚ୍ଚାରଣ ବା ସ୍ମରଣ କରେ; ଭୂତ, ପିଶାଚ ଆଦି ତା ପାଖ ମାଡ଼ି ପାରନ୍ତି ନାହିଁ ।

୨୫ । ବୀର ଶ୍ରୀ ହନୁମାନଙ୍କର ନାମ ନିରନ୍ତର ଜପ କଲେ ସମସ୍ତ ରୋଗ ଓ ଦୁଃଖ ନଷ୍ଟ ହୋଇଯାଏ ।

୨୬ । ମନ, କର୍ମ ଓ ବଚନ ଦ୍ୱାରା ଯେ ଆପଣଙ୍କୁ ଧ୍ୟାନକରେ, ହେ ପ୍ରଭୁ ହନୁମାନଜୀ, ଆପଣ ତାକୁ ସମସ୍ତ ସଙ୍କଟରୁ ରକ୍ଷା କରନ୍ତି ।

୨୭ । ସମସ୍ତଙ୍କର ପ୍ରଭୁ ଶ୍ରୀ ରାମଚନ୍ଦ୍ର ତପସ୍ୱୀ ଅବସ୍ଥା'ରେ ଥିଲାବେଳେ (ବନବାସ ସମୟରେ) ତାଙ୍କର ସମସ୍ତ ସେବା ଓ କାର୍ଯ୍ୟ ଆପଣଙ୍କ ଦ୍ୱାରାହିଁ ସମ୍ପାଦିତ ହୋଇଅଛି ।

ଔର ମନୋରଥ ଜୋ କୋଇ ଲାୱୈ ।
ସୋଇ ଅମିତ ଜୀବନ ଫଲ ପାୱୈ ।୨୮।

ଚାରୌଂ ଜୁଗ ପରତାପ ତୁହ୍ମାରା ।
ହୈ ପରସିଦ୍ଧ ଜଗତ ଉଜିୟାରା ।୨୯।

ସାଧୁ ସନ୍ତ କେ ତୁମ ରଖୱାରେ ।
ଅସୁର ନିକନ୍ଦନ ରାମ ଦୁଲାରେ ।୩୦।

ଅଷ୍ଟ ସିଦ୍ଧି ନୌ ନିଧି କେ ଦାତା ।
ଅସ ବର ଦୀନ ଜାନକୀ ମାତା ।୩୧।

ରାମ ରସାୟନ ତୁହ୍ମରେ ପାସା ।
ସଦା ରହୋ ରଘୁପତି କେ ଦାସା ।୩୨।

ତୁହ୍ମରେ ଭଜନ ରାମ କୋ ପାୱୈ ।
ଜନମ୍ ଜନମ କେ ଦୁଃଖ ବିସରାୱୈ ।୩୩।

---

୨୮ । ଯେ କୌଣସି ବ୍ୟକ୍ତି ସକଳ ମନବାଞ୍ଛିତ କାମନା ନେଇ ଆପଣଙ୍କର ଶରଣାଗତ ହେଲେ ତା'ର ଜୀବନର ଅଭୀଷ୍ଟ ଫଳ ଲାଭ ହୁଏ ।

୨୯ । ହେ ପ୍ରଭୁ ହନୁମାନ୍‌ଜୀ ! ସତ୍ୟ, ତ୍ରେତୟା, ଦ୍ୱାପର, କଳି ଏହି ଚାରି ଯୁଗରେ ଆପଣ ପ୍ରତ୍ୟକ୍ଷ ଓ ଆପଣଙ୍କର ଯଶପ୍ରଭା ସର୍ବତ୍ର ବିଚ୍ଛୁରିତ ।

୩୦ । ହେ ଶ୍ରୀରାମଙ୍କ ଅତ୍ୟନ୍ତ ପ୍ରିୟ ଭକ୍ତ ! ଆପଣ ଅସୁରମାନଙ୍କୁ ନିପାତ କରି ସାଧୁ, ସନ୍ଥମାନଙ୍କୁ ରକ୍ଷା କରିଥାନ୍ତି ।

୩୧ । ଜଗତ୍‌ଜନନୀ ମା ଜାନକୀଙ୍କ ଆଶୀର୍ବାଦରୁ ଆପଣ ଅଷ୍ଟସିଦ୍ଧି ଓ ନବ ନିଧିର ଦାତା ଅଟନ୍ତି ।

୩୨ । ପ୍ରଭୁ ଶ୍ରୀରାମଙ୍କ ନିରନ୍ତର ସେବକ ହୋଇଥିବାରୁ ଆପଣଙ୍କ ପାଖରେ 'ରାମ-ରସାୟନ' (ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କ ପ୍ରୀତିଭାଜନ ତଥା କୃପା ପ୍ରାପ୍ତି ପାଇଁ ଉପାସନା ପଦ୍ଧତି) ରହିଅଛି ।

୩୩ । (ଏଣୁ) ଆପଣଙ୍କ ଉପାସନା ଓ ଭଜନ କରୁଥିବା ବ୍ୟକ୍ତି ତା'ର ବହୁଜନ୍ମର ସମସ୍ତ ଦୁଃଖ (ପ୍ରାରବ୍ଧ, ସଞ୍ଚିତ, କ୍ରିୟମାଣ) ନଷ୍ଟ ପୂର୍ବକ ସେ ପ୍ରଭୁ ଶ୍ରୀରାମଙ୍କୁ ପ୍ରାପ୍ତ କରେ ।

ଅନ୍ତକାଲ ରଘୁବର ପୁର ଜାଇ ।
ଜହାଁ ଜନ୍ମ ହରି ଭକ୍ତ କାହାଇ ।୩୪।
ଔର ଦେଓ୍ୱତା ଚିତ୍ତ ନ ଧରଇ ।
ହନୁମନ୍ତ ସେଇ ସର୍ବ ସୁଖ କରଇ ।୩୫।
ସଙ୍କଟ କଟେ ମିଟେ ସବ ପୀରା ।
ଜୋ-ସୁମିରୈ ହନୁମତ ବଲବୀରା ।୩୬।
ଜୈ ଜୈ ଜୈ ହନୁମାନ ଗୋସାଇଁ ।
କୃପା କରହୁ ଗୁରୁ ଦେଓ୍ୱକୀ ନାଇଁ ।୩୭।

---

୩୪ । (ଏବଂ) ସେହି ବ୍ୟକ୍ତି ଶେଷରେ ପ୍ରଭୁ ଶ୍ରୀ ରଘୁନାଥଙ୍କ ନିତ୍ୟ 'ସାକେତ ଧାମ' (ଚତୁର୍ଦ୍ଦଶ ଭୁବନ ଉପରେ ଥିବା ଚିରନ୍ତନ ଦିବ୍ୟ ଧାମ ଯାହାକି ପ୍ରଳୟ କାଳରେ ମଧ୍ୟ ବିଲୀନ ହୁଏ ନାହିଁ; ଅର୍ଥାତ୍ ପ୍ରଳୟ କାଳରେ ସମସ୍ତ ସୃଷ୍ଟି ଯେଉଁ ଧାମରେ ଲୀନ ହୋଇଯାଏ, ତାହାହିଁ ନିତ୍ୟ ସାକେତ ଧାମ) ପ୍ରାପ୍ତ ହୁଏ; ଯଦି ତା'ର ପୁନର୍ଜନ୍ମ ହୁଏ ତେବେ ସେ ହରି ଭକ୍ତ ରୂପେ ଜନ୍ମଗ୍ରହଣ କରେ ।

୩୫ । (ଯଦିଓ ଆପଣ ସର୍ବ ଦେବ ମୟ ତଥାପି ଇଷ୍ଟ ନିଷ୍ଠା ଦୃଷ୍ଟିରୁ) ଯେଉଁ ବ୍ୟକ୍ତି ଅନ୍ୟାନ୍ୟ ଦେବତାଙ୍କୁ ମନରେ ନଧରି ଶ୍ରୀ ହନୁମାନଙ୍କ ଉପାସନା କରନ୍ତି, ତାଙ୍କୁ ସମସ୍ତ ସୁଖ (ବୈଷୟିକ ଓ ଆଧ୍ୟାତ୍ମିକ) ମିଳି ଥାଏ ।

୩୬ । ଯେଉଁ ଲୋକ ବଳୀୟାନ୍ ବୀର ଶ୍ରୀ ହନୁମାନ୍‌ଜୀଙ୍କୁ ସ୍ମରଣ କରେ ତା'ର ସମସ୍ତ ସଙ୍କଟ ଦୂର ହେବା ସଙ୍ଗେ ସଙ୍ଗେ ଶାରୀରିକ ଓ ମାନସିକ ଯନ୍ତ୍ରଣା ଉପଶମ ହୋଇଯାଏ ।

୩୭ । ସମସ୍ତ ଇନ୍ଦ୍ରିୟମାନଙ୍କୁ ନିଜ ବଶରେ ରଖିଥିବା ପ୍ରଭୁ ଶ୍ରୀ ହନୁମାନ୍‌ଜୀ ଆପଣଙ୍କୁ ମୁଁ ବାରମ୍ବାର ଭଜନକାଳରେ ପ୍ରଣାମ କରୁଅଛି ଯେ ଗୁରୁଦେବଙ୍କ ଭଳି (ଗୁ-ଅନ୍ଧକାର, ରୁ-ଦୂର କରିବା, ଅର୍ଥାତ୍ ଗୁରୁଦେବଙ୍କ କୃପାରୁ ଯେଉଁ ପ୍ରକାର ଅଜ୍ଞାନ-ଅନ୍ଧକାର ନଷ୍ଟ ହୋଇ ପ୍ରଭୁ ପ୍ରାପ୍ତି ପାଇଁ ବିମଳ ଜ୍ଞାନ ଲାଭ ହୁଏ, ସେହିପରି) ଆପଣ ମୋ ପ୍ରତି କୃପା କରନ୍ତୁ ।

ଜୋ ସତବାର ପାଠ କର କୋଈ ।
ଛୁଟହିଁ ବନ୍ଦି ମହା ସୁଖ ହୋଈ ।୩୮।
ଜୋ ୟହ ପଢେ ହନୁମାନ ଚାଲିସା ।
ହୋୟ ସିଦ୍ଧି ସାଖୀ ଗୌରୀସା ।୩୯।
ତୁଲସୀ ଦାସ ସଦା ହରି ଚେରା ।
କୀଜୈ ନାଥ ହୃଦୟ ମହଁ ଡେରା ।୪୦।

ଦୋହା

ପଓ୍ୱନ ତନୟ ସଂକଟ ହରନ,
ମଙ୍ଗଲ ମୂରତି ରୂପ,
ରାମ ଲଷମନ ସୀତା ସହିତ
ହୃଦୟ ବସହୁ ସୁରଭୂପ ।ଇତି।

---

୩୮ । ଯେ କୌଣସି ବ୍ୟକ୍ତି (ଜାତି, ଧର୍ମ, ବର୍ଣ୍ଣ, ଲିଙ୍ଗ, ନିର୍ବିଶେଷରେ ଏହି ହନୁମାନଚାଳିସା) ୧୦୮ ଥର (ଶ୍ରଦ୍ଧା, ଭକ୍ତି ସହିତ) ପାଠ କରେ ସେ ବନ୍ଦୀରୁ ମୁକ୍ତିଲାଭ କରି ସର୍ବବିଧ ସୁଖ ଲାଭ କରେ ।

୩୯ । ଯେ ଏହି 'ହନୁମାନ ଚାଳିଶା'କୁ ପାଠ କରନ୍ତି, ତାଙ୍କର ସମସ୍ତ ସିଦ୍ଧି ଲାଭ ହୁଏ । ଏହି ଉକ୍ତିର ସାକ୍ଷୀ ଗୌରୀପତି ଶ୍ରୀ ଶଙ୍କର ଅଟନ୍ତି ।

୪୦ । ଗୋସ୍ୱାମୀ ତୁଳସୀ ଦାସ ସର୍ବଦା ଶ୍ରୀ ହରିଙ୍କ (ଦୁଃଖ ତାପ ହରଣକାରୀ ଶ୍ରୀ ରାମଚନ୍ଦ୍ର ଓ ତାଙ୍କ ଏକାତ୍ମ ଅଭିନ୍ନରୂପୀ ସେବକ ହରି ଅର୍ଥାତ୍ ବାନରରୂପୀ ଶ୍ରୀ ହନୁମାନ୍‌ଜୀ) ଚିରନ୍ତନ ସେବକ ସର୍ବଦା ତାଙ୍କ ନିତ୍ୟ ସେବାରେ ରତ ଅଛୁ । ଏଣୁ ହେ ପ୍ରଭୁ, ଏହି ମିନତି ଯେ, ଆପଣ ମୋ ହୃଦୟରେ ବାସ କରନ୍ତୁ ।

ଦୋହା—ସଙ୍କଟ ହରଣକାରୀ, ମଙ୍ଗଳ ପ୍ରତିମ, ପବନ ନନ୍ଦନ ଦେବଗଣଙ୍କ ମଧ୍ୟରେ ଶ୍ରେଷ୍ଠ, ଶ୍ରୀ ହନୁମାନ୍‌ଜୀ (ଆପଣ କୃପାକରି) ପ୍ରଭୁ ଶ୍ରୀରାମ, ଲକ୍ଷ୍ମଣ ଓ ମା ସୀତାଙ୍କ ସହିତ ମୋ ହୃଦୟରେ ବାସ କରନ୍ତୁ । ଇତି ।

---

# ସଂକଟ ମୋଚନ ହନୁମାନାଷ୍ଟକ

(ମତ୍ତ ଗୟନ୍ଦ୍ର ଛନ୍ଦ)

ବାଲ ସମୟ ରବି ଭକ୍ଷି ଲିୟୋ ତବ
ତୀନହୁଁ ଲୋକ ଭୟୋ ଅଁଧିୟାରୋ ।
ତାହି ସୋଂ ତ୍ରାସ ଭୟୋ ଜଗ କୋ
ୟହ ସକଂଟ କାହୁ ସୋଂ ଜାତ ନଟାରୋ ।
ଦେଓ୍ୱନ ଆନି କରି ବିନତୀ ତବ
ଛାଁଡ଼ି ଦିୟୋ ରବି କଷ୍ଟ ନିଓ୍ୱାରୋ ।
କୋ ନହିଂ ଜାନତ ହୈ ଜଗ ମେଁ କପି
ସଂକଟ ମୋଚନ ନାମ ତିହାରୋ । ୧ । (ଘୋଷା)

ବାଲୀ କୀ ତ୍ରାସ କପୀସ ବସୈ ଗିରି,
ଜାତ ମହାପ୍ରଭୁ ପନ୍ଥ ନିହାରୋ ।
ଚୌଂକି ମହା ମୁନି ସାପ ଦିୟୋ ତବ
ଚାହିୟ କୌନ ବିଚାର ବିଚାରୋ ।

---

୧ । ବାଲ୍ୟାବସ୍ଥାରେ ସୂର୍ଯ୍ୟ ଦେବଙ୍କୁ ଭକ୍ଷଣ କରିବାରୁ ତ୍ରିଲୋକ ଅନ୍ଧକାରାଚ୍ଛନ୍ନ ହୋଇଗଲା । ଜଗତର ସକଳ ଜୀବ ଭୀତତ୍ରସ୍ତ ହେବାରୁ ଯେଉଁ ସଙ୍କଟ ଉପୁଜିଲା, ତାହା ଅନ୍ୟ କାହାଦ୍ୱାରା ଉପଶମ ହୋଇ ପାରିଲା ନାହିଁ । ଦେବଗଣ ଆସି ଆପଣଙ୍କୁ ପ୍ରାର୍ଥନା କରିବାରୁ, ଆପଣ କୃପାକରି ସୂର୍ଯ୍ୟ ଦେବତାଙ୍କୁ ନିଜ କବଳରୁ ମୁକ୍ତ ଦେଇ ସମସ୍ତ ଜଗତର ଦୁଃଖ କଷ୍ଟ ନିବାରଣ କରିଥିଲେ । ଅତଏବ ହେ କପିପତି ! (ଶ୍ରୀ ହନୁମାନଜୀ) ଆପଣଙ୍କର ନାମ 'ସଙ୍କଟ ମୋଚନ' ଏକଥା ଜଗତରେ କିଏ ବା ନ ଜାଣେ ।

୨ । ବାନର ରାଜା 'ବାଲୀ'ର ଭୟରେ ସୁଗ୍ରୀବ ଋଷ୍ୟମୂକ ପର୍ବତରେ ରହୁଥିଲେ । ଅଗସ୍ତି ମୁନିଙ୍କ ଅଭିଶାପ ଯୋଗୁ ବାଲୀ ସେ ପର୍ବତକୁ ଯାଇ ପାରୁ

କୈ ଦ୍ୱିଜ ରୂପ ଲିଓ୍ୱାୟୁ ମହାପ୍ରଭୁ
ସୋ ତୁମ ଦାସ କେ ସୋକ ନିଓ୍ୱାରେ ।
କୋ ନାହିଁ ଜାନତ ହୈ ଜଗ ମେଁ କପି
ସଂକଟ ମୋଚନ ନାମ ତିହାରୋ ।୨।
ଅଂଗଦ କେ ସଁଗ ଲେନ ଗୟେ ସିୟ
ଖୋଜ କପୀସ ୟହ ବୈନ ଉଚ୍ଚରେ ।
ଜୀବତ ନା ବଚିହୌ ହମ ସୋ ଜୁ
ବିନା ସୁଧି ଲାଏ ଇହାଁ ପଗୁ ଧାରୋ ।
ହେରି ଥକେ ତଟ ସିନ୍ଧୁ ସବୈ ତବ ଲାୟ-
ସିୟା-ସୁଧି ପ୍ରାନ ଉବାରେ ।
କୋ ନହିଁ ଜାନତ ହୈ ଜଗ ମେଁ କପି
ସଂକଟ ମୋଚନ ନାମ ତିହାରୋ ।୩।

---

ନ ଥିଲା । ସୁଗ୍ରୀବ ଋଷ୍ୟମୂକ ପର୍ବତରେ ରହି ବାଲୀ-ଆକ୍ରମଣ ମୁକାବିଲା କରିବା ପାଇଁ ଉପାୟ ଚିନ୍ତା କଲାବେଳେ ଦୂରରୁ ପ୍ରଭୁ ଶ୍ରୀ ରାମଚନ୍ଦ୍ର ଓ ଲକ୍ଷ୍ମଣ ରାସ୍ତାରେ ଯାଉଥିବାର ଦେଖି ଆପଣ ବ୍ରାହ୍ମଣରୂପ ଧାରଣ କରି ପ୍ରଭୁ ଶ୍ରୀରାମଙ୍କୁ ଆଣି ଆପଣଙ୍କ ସେବକ (ସୁଗ୍ରୀବ ସହ ମିତ୍ରତା କରାଇ, ବାଲୀବଧ ଏବଂ ସୁଗ୍ରୀବଙ୍କ ଅପହୃତ ରାଜ୍ୟ କିଷ୍କିନ୍ଧାରେ ରାଜା କରି) ସୁଗ୍ରୀବର ଦୁଃଖ ମୋଚନ କରି ଥିଲେ । ଅତଏବ ହେ କପିପତି ଶ୍ରୀ ହନୁମାନ୍‌ଜୀ ! ଆପଣଙ୍କର ନାମ 'ସଙ୍କଟ ମୋଚନ' ଏକଥା ଜଗତରେ କିଏ ବା ନ ଜାଣେ ?

୩ । ବାନର ରାଜା ସୁଗ୍ରୀବଙ୍କ ଆଦେଶରେ ଅଙ୍ଗଦଙ୍କୁ ସଙ୍ଗରେ ନେଇ ସୀତାଙ୍କ ଅନ୍ୱେଷଣରେ ଆପଣ ବାହାରିଲେ । ମା ସୀତାଙ୍କ ସନ୍ଧାନ ନ ନେଇ ଫେରିଲେ ସମସ୍ତ ଦୂତମାନଙ୍କ ପ୍ରାଣହାନି ଘଟିବ, ଏକଥା ଭାବି ସମୁଦ୍ର ତଟରେ ସମସ୍ତ ଦୂତଗଣ ଚିନ୍ତା ଓ ବ୍ୟସ୍ତତା ମଧ୍ୟରେ ଥିଲାବେଳେ ଆପଣ (ସମୁଦ୍ର ଲଙ୍ଘନ କରି ଲଙ୍କାରେ ପ୍ରବେଶ ପୂର୍ବକ) ସୀତାଙ୍କୁ ଠାବ କରି ସମସ୍ତ ଦୂତୀଙ୍କର ଜୀବନ ରକ୍ଷା କଲେ । ଏଣୁ ହେ କପିପତି ! ଆପଣଙ୍କର ନାମ 'ସଙ୍କଟ ମୋଚନ' ଏକଥା ଜଗତରେ କିଏ ବା ନ ଜାଣେ ?

ରାଓ୍ୱନ ତ୍ରାସ ଦଈ ସିୟ କୋ ସବ
ରାକ୍ଷସି ସୋଂ କହି ସୋକ ନିଓ୍ୱାରୋ ।
ତାହି ସମୟ ହନୁମାନ ମହାପ୍ରଭୁ
ଜାୟ ମହା ରଜନୀଚର ମାରୋ ।
ଚାହତ ସୀୟ ଅସୋକ ସୌଁ ଆଗିସୁ
ଦୈ ପ୍ରଭୁ ମୁଦ୍ରିକା ସୋକ ନିଓ୍ୱାରୋ ।
କୋ ନହିଁ ଜାନତ ହୈ ଜଗ ମେଁ କପି
ସଂକଟ ମୋଚନ ନାମ ତିହାରୋ । ୪ ।

ବାନ ଲଗ୍ୟୋ ଉର ଲଛିମନ କେ ତବ
ପ୍ରାନ ତଜେ ସୁତ ରାଓ୍ୱନ ମାରୋ ।
ଲୈ ଗୃହ ବୈଦ୍ୟ ସୁଷେନ ସମେତ
ତବୈ ଗିରି ଦ୍ରୋନ ସୁ ବୀର ଉପାରୋ ।

---

୪ । ରାକ୍ଷସୀମାନଙ୍କ ଦ୍ୱାରା ରାବଣ ମା ସୀତାଙ୍କୁ ଭୟଭୀତ କରୁଥିଲା । ଆପଣ ଲଙ୍କାରେ ପ୍ରବେଶ କରି ଅକ୍ଷୟ କୁମାର ଆଦି ରାକ୍ଷସମାନଙ୍କୁ ବଧ କଲେ । ମା ଜାନକୀ ଅତ୍ୟନ୍ତ ଦୁଃଖାଭିଭୂତା ହୋଇ ଅଶୋକ ବୃକ୍ଷର କୋମଳ ପଲ୍ଲବକୁ ଅଗ୍ନି ବୋଲି ଭାବି, ତା'ଠାରୁ ଅଗ୍ନି ମାଗୁଥିବା ବେଳେ, ଆପଣ ସେହି ଅଶୋକ ବୃକ୍ଷ ଉପରୁ ପ୍ରଭୁ ଶ୍ରୀରାମଙ୍କ ମୁଦ୍ରିକା ସୀତାଙ୍କ ନିକଟକୁ ନିକ୍ଷେପ କରି ସୀତାଙ୍କୁ ଶୋକରୁ ନିବୃତ୍ତ କରିଥିଲେ । ଅତଏବ ହେ କପିପତି ଶ୍ରୀ ହନୁମାନଜୀ ! ଆପଣଙ୍କର ନାମ 'ସଙ୍କଟ ମୋଚନ' ଏକଥା ଜଗତରେ କିଏ ବା ନ ଜାଣେ ।

୫ । ରାବଣ ପୁତ୍ର ଇନ୍ଦ୍ରଜିତର ବାଣ ଲକ୍ଷ୍ମଣଙ୍କ ବକ୍ଷଦେଶକୁ ବିଦ୍ଧ କରନ୍ତେ ଲକ୍ଷ୍ମଣ ସଙ୍କଟାପନ୍ନ ଅବସ୍ଥାରେ ଭୂପତିତ ଥିଲେ । ଆପଣ ଅର୍ଦ୍ଧରାତ୍ରରେ ଲଙ୍କାରେ ବୈଦ୍ୟରାଜ ସୁଷେଣଙ୍କୁ ତାଙ୍କ ଘରୁ ଉଠାଇ ଆଣି ଓ ତାଙ୍କ ପରାମର୍ଶ

ଆନ ସଜୀବନ ହାଥ ଧରି ତବ
ଲଛୁମନ କେ ତୁମ ପ୍ରାନ ଉବାରେ ।
କୋନହିଁ ଜାନତ ହେଁ ଜଗମେ କପି
ସଂକଟ ମୋଚନ ନାମ ତିହାରେ । ୫ ।

ରାଓ୍ବନ ଜୁଦ୍ଧ ଅଜାନ କୟୋ ତବ
ନାଗ କ ଫାଁସ ସବୈ ସିର ଡାରେ ।
ଶ୍ରୀରଘୁନାଥ ସମେତ ସବୈ ଦଲ
ମୋହ ଭୟୋ ଯହ ସଂକଟ ଭରେ ।
ଆନ ଖଗେସ ତବୈ ହନୁମାନ ଜୁ
ବଂଧନ କାଟି ସୁତ୍ରାସ ନଓ୍ବାରେ ।
କୋ ନହିଁ ଜାନତ ହେଁ ଜଗ ମେଂ କପି
ସଂକଟ ମୋଚନ ନାମ ତିହାରେ । ୬ ।

---

ସମେ ଅବଲମ୍ବେ ସୁଦୂର ବୃହଦାକାୟ ଗନ୍ଧ-ମାର୍ଦନ ପର୍ବତକୁ ଉପାଡ଼ି, ତହିଁରୁ 'ସଞ୍ଜୀବନୀ ଜଡ଼ି' ଖୋଜି ଲକ୍ଷ୍ମଣଙ୍କ ପ୍ରାଣରକ୍ଷା କରିଅଛନ୍ତି । ଅତଏବ ହେ କପିପତି ଶ୍ରୀ ହନୁମାନ୍‌ଜୀ! ଆପଣଙ୍କର ନାମ ସଙ୍କଟ ମୋଚନ ଏକଥା ଜଗତରେ କିଏ ବା ନ ଜାଣେ ।

୬ । ଲଙ୍କାର ରାବଣ ଅତର୍କିତ ଭାବେ ଯୁଦ୍ଧ କରି ନାଗପାଶ ବନ୍ଧନ କରିବାରୁ ପ୍ରଭୁ ଶ୍ରୀ ରଘୁନାଥ ଏବଂ ଭଲ୍ଲୁକ ଓ ବାନର ସୈନ୍ୟମାନେ ବନ୍ଦୀ ହୋଇ ବନ୍ଧନଜନିତ ସଙ୍କଟ ଅବସ୍ଥାରେ ପଡ଼ିଥିଲା ବେଳେ ଆପଣ ଗରୁଡ଼ଙ୍କୁ ଆହ୍ୱାନ କରି ସମସ୍ତଙ୍କୁ ନାଗପାଶ ବନ୍ଧନରୁ ମୁକ୍ତ କରି ସେମାନଙ୍କ ଯନ୍ତ୍ରଣା ଦୂର କରିଥିଲେ ଅତଏବ ହେ କପିପତି ଶ୍ରୀ ହନୁମାନଜୀ ! ଆପଣଙ୍କର ନାମ 'ସଙ୍କଟ ମୋଚନ' ଏକଥା ଜଗତରେ କିଏ ବା ନ ଜାଣେ ।

ବଂଧୁ ସମେତ ଜବୈ ଅହିରାବ୍ଣ
ଲୈ ରଘୁନାଥ ପତାଲ ସିଧାରେ ।
ଦେବହିଁ ପୂଜ ଭଲୀ ବଧି ସୌ ବଲି
ଦେଉ ସବୈ ମିଲି ମଂତ୍ର ବଚାରେ ।
ଜାୟ ସହାୟ ଭୟୋ ତବ ହୀ
ଅହିରାବ୍ଣ ସୈନ୍ୟସମେତ୍ ସଁହାରେ ।
କୋ ନହିଁ ଜାନତ ହୈ ଜଗ ମେଁ କପି
ସଙ୍କଟ ମୋଚନ ନାମ ତିହାରେ । ୭ ।
କାଜ କୟେ ବଡ଼ ଦେଓ୍ଵନ କେ ତୁମ
ବୀର ମହାପ୍ରଭୁ ଦେଖି ବଚାରେ
କୌନ ସୋ ସଙ୍କଟ ମୋର ଗରିବ କୋ-
ଜୋ ତୁମସୌଁ ନହିଂ ଜାତ ହୈ ଟାରେ ।
ବେଗି ହରେ ହନୁମାନ ମହାପ୍ରଭୁ
ଜୋ କଛୁ ସଙ୍କଟ ହୋୟ ହମାରେ ।
କୋ ନହିଁ ଜାନତ ହୈ ଜଗ ମେଁ କପି
ସଙ୍କଟ ମୋଚନ ନାମ ତିହାରେ । ୮ ।

---

୭ । ଦୁଷ୍ଟ ଅହିରାବଣ ଶ୍ରୀରାମ ଓ ଲକ୍ଷ୍ମଣଙ୍କୁ ପାତାଳ ପୁରକୁ ନେଇ ଦେବୀଙ୍କ ସମ୍ମୁଖରେ ବଳୀ ଦେବାକୁ ଉଦ୍ୟତ ହେଉଥିଲାବେଳେ ଆପଣ ମନ୍ତ୍ରଣା-କରି ସେଠାରେ ପହଞ୍ଚି ଅହିରାବଣ ଓ ତା'ର ସୈନ୍ୟଙ୍କୁ ସଂହାର କରିଥିଲେ । ଅତଏବ କପିପତି ଶ୍ରୀ ହନୁମାନଜୀ ! ଆପଣଙ୍କର ନାମ 'ସଙ୍କଟ ମୋଚନ' ଏକଥା ଜଗତରେ କିଏ ବା ନ ଜାଣେ ।

୮ । ଦେବତାମାନଙ୍କ ବିପତ୍ତି ସମୟରେ ଆପଣ ସବୁବେଳେ ସେମାନଙ୍କୁ ରକ୍ଷାକରି ଦେବତାଙ୍କ ମଙ୍ଗଳ ପାଇଁ ସମସ୍ତ କାର୍ଯ୍ୟ କରିଛନ୍ତି । ହେ ବଳୀୟାନ୍ ମହାପ୍ରଭୁ ! ଆପଣ ବିଚାର କରି ଦେଖନ୍ତୁ ତ ? ମୋପରି ଏହି କ୍ଷୁଦ୍ର

ଦୋହା

ଲାଲ ଦେହ, ଲାଲୀ ଲସେ, ଅରୁଧର ଲାଲ ଲଂଗୁର ।
ବଜ୍ର ଦେହ ଦାନବ, ଦଲନ ଜୟ ଜୟ ଜୟ କପିସୁର ।

ଇତି, ସଙ୍କଟ ମୋଚନ ହନୁମାନାଷ୍ଟକ ସମ୍ପୂର୍ଣ୍ଣ

---

ଗରିବର କ'ଣ ବା ବଡ଼ ସଙ୍କଟ ହୋଇ ଯାଇଛି ଯେ, ଯାହା ଆପଣଙ୍କ ଦ୍ୱାରା ମୋଚନ ହୋଇ ନ ପାରିବ । ତେଣୁ ହେ ହନୁମାନଜୀ ! ମୋର ଯାହା କିଛି ସଙ୍କଟ (ବିପତ୍ତି) ଅଛି, ତାହା ଶୀଘ୍ର ହରଣ କରନ୍ତୁ ।

ଦୋହା—ଲାଲ ସିନ୍ଦୁର ପ୍ରଲେପିତ, ମନୋରମ ରକ୍ତବର୍ଣ୍ଣ ଶରୀର ଓ ଲାଲ ବର୍ଣ୍ଣର ଲାଙ୍ଗୁଳସହ ସୁଶୋଭମାନ, ବଜ୍ରଦେହୀ, ଦୁଷ୍ଟ ଦୁର୍ଜନର ବିନାଶକାରୀ ହେ ବଳୀୟାନ୍ କପିପତି ଶ୍ରୀ ହନୁମାନଜୀ ! ଆପଣଙ୍କର ଜୟ ଜୟ, ଜୟ ଉଚ୍ଚାରଣ କରି ପ୍ରଣାମ କରୁଅଛି !

'ଇତି' ସଙ୍କଟମୋଚନ ହନୁମାନାଷ୍ଟକ ସମ୍ପୂର୍ଣ୍ଣ !



# ଶ୍ରୀ ହନୁମାନଜୀକୀ ଆରତୀ

ଆରତୀ କୀ ଜୈ ହନୁମାନ ଲଲାକୀ
ଦୁଷ୍ଟ ଦଲନ ରଘୁନାଥ କଲାକୀ । ଟେକ ।

ଜାକେ ବଲ ସେ ଗିରିଓ୍ୱର କାଁପେ ।
ରୋଗ ଦୋଷ ଜାକେ ନିକଟ ନ ଝାଁପେ । ୧ ।

ଅଞ୍ଜନୀ ପୁତ୍ର ମହାବଳ ଦାଈ ।
ସନ୍ତନ କେ ପ୍ରଭୁ ସଦା ସହାଈ । ୨ ।

ଦେ-ବୀରା ରଘୁନାଥ ପଠାଏ ।
ଲଂକା ଜାରି ସୀୟ ସୁଧିଲାଏ । ୩ ।

ଲଂକା ସୋ କୋଟ ସମୁଦ୍ର-ସୀ ଖାଈ ।
ଜାତ ପଓ୍ୱନ-ସୁତ ବାର ନ ଲାଈ । ୪ ।

ଲଂକା ଜାରି ଅସୁର ସଂହାରେ ।
ସିୟାରାମଜୀକେ କାଜ ସଁଓ୍ୱାରେ । ୫ ।

ଲକ୍ଷ୍ମଣ ମୂର୍ଚ୍ଛିତ ପଡ଼େ ସକାରେ ।
ଆନି ସଜୀବନ ପ୍ରାନ ଉବାରେ । ୬ ।

ପେଠି ପତାଲ ତୋରି ଜମ-କାରେ ।
ଅହିରାଓ୍ୱନ କୀ ଭୁଜା ଉଖାରେ । ୭ ।

ବାଏଁ ଭୁଜା ଅସୁରଦଲ ମାରେ ।
ଦାହିନେ ଭୁଜା ସନ୍ତଜନ ତାରେ । ୮ ।

ସୁର ନର ମୁନି ଆରତି ଉତାରେ ।
ଜୈ ଜୈ ଜୈ ହନୁମାନ ଉଚାରେ । ୯ ।

କଂଚନ ଥାର କପୂର ଲୌ ଛାଈ ।
ଆରତି କରତି ଅଞ୍ଜନା ମାଈ । ୧୦ ।

ଜୋ ହନୁମାନ (ଜୀ) କୀ ଆରତି ଗାଓ୍ୱେ ।
ବସି ବୈକୁଣ୍ଠ ପରମ ପଦ ପାଓ୍ୱେ । ୧୧ ।

---

# ହନୁମାନ୍‌ଜୀଙ୍କ ତ୍ରିକାଳ-ସ୍ମରଣ ମନ୍ତ୍ର

ପ୍ରାତଃ ସ୍ମରାମି ହନୁମନ୍ତ ମନନ୍ତବୀର୍ଯ୍ୟଂ ।
ଶ୍ରୀ ରାମଚନ୍ଦ୍ର ଚରଣାମ୍ବୁଜ ଚଞ୍ଚରୀକମ୍ ।
ଲଙ୍କାପୁରୀ ଦହନ ନନ୍ଦିତ ଦେବବୃନ୍ଦଂ ।
ସର୍ବାର୍ଥସିଦ୍ଧିସଦନଂ ପ୍ରଥିତ ପ୍ରଭାବମ୍ ।୧।

ଯେ ଶ୍ରୀରାମଚନ୍ଦ୍ରଙ୍କ ପାଦପଦ୍ମରେ ଭ୍ରମର ସଦୃଶ ବିଚରଣ କରୁଥାନ୍ତି, ଲଙ୍କାପୁରୀ ଦହନ କରି ଦେବଗଣଙ୍କୁ ଆନନ୍ଦ ପ୍ରଦାନ କରିଛନ୍ତି, ଯେ ସମସ୍ତ ଅଭିଳାଷ ସିଦ୍ଧିର ଆବାସ ସ୍ଥଳ ଏବଂ ଯାହାଙ୍କର ପ୍ରଭାବ ସର୍ବତ୍ର ବିଦିତ; ସେହି ଅଶେଷ ପରାକ୍ରମଶାଳୀ ପ୍ରଭୁ ଶ୍ରୀ ହନୁମାନ୍‌ଜୀଙ୍କୁ ମୁଁ ପ୍ରଭାତରେ ସ୍ମରଣ କରୁଅଛି ।

ମାଧ୍ୟଂ ନମାମି ବୃଜିନାର୍ଣ୍ଣବତାର ନୌକା
ଧୀରଂ ଶରଣ୍ୟଂ ମୁଦିତାନୁପମପ୍ରଭାବମ୍ ।
ସୀତାଽଧିସିନ୍ଧୁ ପରିଶୋଷଣ କର୍ମଦକ୍ଷଂ
ବନ୍ଦାରୁକଳ୍ପ ତରୁମବ୍ୟୟ ମାଂଞ୍ଜନେୟମ୍ ।୨।

ଯେ ସଂସାର-ସାଗରରୁ ଉଦ୍ଧାର କରିବାକୁ ଏକମାତ୍ର ମାଧ୍ୟମ ଏବଂ ଶରଣାଗତର ରକ୍ଷକ, ଯାହାଙ୍କର ଅନୁପମ ପ୍ରଭାବ ସର୍ବତ୍ର ପ୍ରକଟିତ, ଯେ ସୀତା ମହାରାଣୀଙ୍କର ଦୁଃଖ-ସିନ୍ଧୁ ଶୋଷଣ କରିବାରେ ପରମ ପ୍ରବୀଣ, ବନ୍ଦନୀୟ ବ୍ୟକ୍ତିର ଅଭିଳାଷ ପୂରଣ କରିବାରେ ଯେ କଳ୍ପବୃକ୍ଷ ସଦୃଶ; ସେହି ଅଞ୍ଜନାଙ୍କ ସୁତ ଶ୍ରୀ ହନୁମାନ୍‌ଜୀଙ୍କୁ ମୁଁ ମଧ୍ୟାହ୍ନରେ ପ୍ରଣାମ କରୁଅଛି ।

ସାୟଂ ଭଜାମି ଶରଣୋପସୃତାଖିଳାର୍ତ୍ତି-
ପୁଞ୍ଜପ୍ରଣାଶନ ବିଧୌ ପ୍ରଥିତପ୍ରତାପମ୍ ।
ଅକ୍ଷାନ୍ତକଂ ସକଳରାକ୍ଷସବଂଶଧୂମ-
କେତୁଂ ପ୍ରମୋଦିତ ବିଦେହସୁତଂ ଦୟାଳୁମ୍ ।୩।

ଶରଣାଗତର ଦୁଃଖ ରାଶିକୁ ସମ୍ପୂର୍ଣ୍ଣରୂପେ ବିନାଶ କରିବାରେ ଯାହାଙ୍କର ପ୍ରତାପ ଲୋକ ପ୍ରସିଦ୍ଧ ହୋଇଅଛି, ଯେ ଅକ୍ଷୟକୁମରର ନିଧନକାରୀ ଏବଂ ରାକ୍ଷସ କୁଳର ସଂହାରକାରୀ ଧୂମକେତୁ, ଯେ ବିଦେହ ନନ୍ଦନୀ ସୀତାଙ୍କୁ ଆନନ୍ଦପ୍ରଦାନ କରିଥିଲେ, ସେହି ଦୟାଳୁ ହନୁମାନ୍‌ଙ୍କୁ ସନ୍ଧ୍ୟା ସମୟରେ ଭଜନ କରୁଅଛି ।

---

# ମନ୍ତ୍ରାତ୍ମକଂ ଶ୍ରୀ ମାରୁତି ସ୍ତୋତ୍ରମ୍

ଓଁ ନମୋ ବାୟୁ ପୁତ୍ରାୟ ଭୀମରୂପାୟ ଧୀମତେ ।
ନମସ୍ତେ ରାମଦୂତାୟ କାମରୂପାୟ ଶ୍ରୀମତେ । ୧ ।

ମୋହ ଶୋକ ବିନାଶାୟ ସୀତା ଶୋକ ବିନାଶିନେ ।
ଭଗ୍ନାଶୋକ ବନାୟାସ୍ତୁ ଦଗ୍ଧଲଙ୍କାୟ ବାଗ୍ମିନେ । ୨ ।

ଗତିନିର୍ଜିତବାତାୟ ଲକ୍ଷ୍ମଣ ପ୍ରାଣଦାୟ ଚ ।
ବନୌକସାଂ ବରିଷ୍ଠାୟ ବଶିନେ ବନବାସିନେ । ୩ ।

ତତ୍ତ୍ୱଜ୍ଞାନ ସୁଧାସିନ୍ଧୁ ନିମଗ୍ନାୟ ମହୀୟସେ ।
ଆଂଜନେୟାୟ ଶୂରାୟ ସୁଗ୍ରୀବ ସଚିବାୟ ତେ । ୪ ।

ଜନ୍ମମୃତ୍ୟୁ ଭୟଘ୍ନାୟ ସର୍ବକ୍ଲେଶ ହରାୟ ଚ ।
ନେଦିଷ୍ଠାୟ ପ୍ରେତଭୂତ ପିଶାଚ ଭୟ ହାରିଣେ । ୫ ।

ୟାତନାନା ଶାନୟାସ୍ତୁ ନମୋ ମର୍କଟରୂପିଣେ ।
ଯକ୍ଷ ରାକ୍ଷସ ଶାର୍ଦ୍ଦୂଳ ସର୍ପ ବୃଶ୍ଚିକ ଖିହ୍ବତେ । ୬ ।

ମହାବଳାୟ ବୀରାୟ ଚିରଂଜୀବନ ଉଦ୍ଧତେ ।
ହାରିଣେ ବଜ୍ରଦେହାୟ ଚୈଲ୍ଲଙ୍ଘିତ ମହାବ୍ଧୟେ । ୭ ।

ବଳନାମଗ୍ରଗଣ୍ୟାୟ ନମୋ ନଃ ପାହି ମାରୁତେ ।
ଲାଭଦୋଽସି ତ୍ୱମେବାଶୁ ହନୁମନ୍ ରାକ୍ଷସାନ୍ତକ । ୮ ।

ୟଶୋ ଜୟଂଚମେ ଦେହି ଶତ୍ରୁନ୍ ନାଶୟ ନାଶୟ ।
ସ୍ୱାଶ୍ରିତାନାମ ଭୟଦଂ ଯ ଏବଂ ସ୍ତୌତି ମାରୁତମ୍ ।
ହାନି କୁତୋ ଭବେତ୍ତସ୍ୟ ସର୍ବତ୍ର ବିଜୟୀ ଭବେତ୍ । ୯ ।

---

୧ । ଓଁ ଆକର୍ଷଣ ରୂପଧାରୀ ବୁଦ୍ଧିମାନ୍, ବାୟୁପୁତ୍ର ଶ୍ରୀ ହନୁମାନ୍‌ଙ୍କୁ ନମସ୍କାର । ଐଶ୍ୱର୍ଯ୍ୟଶାଳୀ, ସ୍ୱଇଚ୍ଛା-ରୂପୀ, ଶ୍ରୀରାମ ଦୂତଙ୍କୁ ମୁଁ ନମସ୍କାର କରୁଅଛି ।

୨ । ମୋହ, ଶୋକ ବିନାଶକ, ଶ୍ରୀ ସୀତାଙ୍କ ଦୁଃଖ ମୋଚନକାରୀ, ଅଶୋକବନ ବିଧ୍ୱଂସକ, ଲଙ୍କା ଦହନକାରୀ, କୁଶଳ ବକ୍ତା ଶ୍ରୀ ରାମଦୂତ ହନୁମାନ୍‌ଜୀଙ୍କୁ ମୋର ନମସ୍କାର ।

୩ । ଶ୍ରୀ ଲକ୍ଷ୍ମଣଙ୍କ ପ୍ରାଣଦାତା, ପବନଠାରୁ ଅଧିକ ବେଗବାନ ଜିତେନ୍ଦ୍ରିୟ, ବନବାସୀ, ବାନର ଶ୍ରେଷ୍ଠ, ଶ୍ରୀ ହନୁମାନ୍‌ଜୀଙ୍କୁ ମୋର ନମସ୍କାର ।

୪ । ଚନ୍ଦ୍ରଜ୍ଜ୍ୱଳନାମୃତ ସମୁଦ୍ରରେ ନିମଗ୍ନମାନ, ଦିବ୍ୟ ଐଶ୍ୱର୍ଯ୍ୟ ସମ୍ପୂର୍ଣ୍ଣ, ସୁଗ୍ରୀବଙ୍କ ଉପଦେଷ୍ଟା, ଶୂର ବୀର, ଅଞ୍ଜନା ନନ୍ଦନ ଶ୍ରୀ ହନୁମାନ୍‌ଜୀଙ୍କୁ ମୋର ପ୍ରଣାମ ।

୫ । ଜନ୍ମ-ମୃତ୍ୟୁ ଜନିତ ଭୟ ହରଣକାରୀ, ସର୍ବକଷ୍ଟ ନିବାରକ, ପ୍ରଭୁ ଶ୍ରୀ ରାମଚନ୍ଦ୍ରଙ୍କ ଅନ୍ତରଙ୍ଗ ଭକ୍ତ, ଭୂତ-ପ୍ରେତ-ପିଶାଚ ଭୟ ନିବାରକ, ଶ୍ରୀ ହନୁମାନ୍‌ଜୀଙ୍କୁ ମୋର ନମସ୍କାର ।

୬ । ସମସ୍ତ ଯନ୍ତ୍ରଣା ନାଶକ, ଯକ୍ଷ, ରାକ୍ଷସ, ବ୍ୟାଘ୍ର, ସିଂହ, ସର୍ପ, ବଣ୍ଡ ପ୍ରଭୃତିଙ୍କଦ୍ୱାରା ଘଟିତ ଭୟ ନିବାରକ ବାନରରୂପଧାରୀ ଶ୍ରୀ ହନୁମାନ୍‌ଜୀଙ୍କୁ ମୁଁ ନମସ୍କାର କରୁଅଛି ।

୭ । ମହାସମୁଦ୍ର ଲଙ୍ଘନକାରୀ, ଅହଙ୍କାରୀମାନଙ୍କ ଦର୍ପ ଗଞ୍ଜନକାରୀ, ଚିରଂଜୀବୀ, ବଳବାନମାନଙ୍କ ଅଗ୍ରଣୀ, ବଜ୍ରସମ ଦୃଢ଼-ଶରୀର, ଶ୍ରୀ ହନୁମାନ୍‌ଜୀଙ୍କୁ ମୋର ନମସ୍କାର ।

୮ । ମହାପରାକ୍ରମୀ, ବୀର ଶ୍ରେଷ୍ଠ, ହେ ମାରୁତିନନ୍ଦନ ! ଆମ୍ଭମାନଙ୍କୁ ରକ୍ଷା କରନ୍ତୁ । ରାକ୍ଷସମାନଙ୍କ ଅନ୍ତକ (ଯମ) ଶ୍ରୀ ହନୁମାନ୍‌ଜୀ, ଆପଣ ଆଶୁ ଫଳ ଦାୟକ ଅଟନ୍ତି ।

୯ । ହେ ମାରୁତି, ମୋତେ ଆପଣ ଯଶ ଓ ବିଜୟ ପ୍ରଦାନ ପୂର୍ବକ ଶତ୍ରୁମାନଙ୍କୁ ନାଶ କରିବା ହେଉନ୍ତୁ । ଆଶ୍ରିତମାନଙ୍କର ଶରଣଦାତା ଶ୍ରୀ ହନୁମାନଙ୍କୁ ଯେଉଁ ବ୍ୟକ୍ତି ଏହି ଭଳି ସ୍ତୋତ୍ର ଦ୍ୱାରା ପ୍ରାର୍ଥନା କରନ୍ତି ସେ ସବୁଠାରେ ବିଜୟୀ ହୁଅନ୍ତି । ଅତଃ ତାଙ୍କର ହାନୀ ବା କିପରି ଘଟିବ ?

---

ମୁଦ୍ରଣ—ନିଉ ପବ୍‌ଲିସିଂ ପ୍ରେସ, ବାଲୁବଜାର, କଟକ-୨